# ଭଣ୍ଡ ସଂହାର

(ହାସ୍ୟ, ବ୍ୟଙ୍ଗ ଓ ସଚେତନକାରୀ କବିତାଗୁଚ୍ଛ)



ରଚନା :

ଡକ୍ଟର କୃତ୍ତିବାସ ନାୟକ

Source: Author, Digitized by PPRACHIN, SOA

# ଭଣ୍ଡ ସଂହାର

(ହାସ୍ୟ ବ୍ୟଙ୍ଗ ଓ ସଚେତନକାରୀ କବିତାଗୁଚ୍ଛ)

ପ୍ରକାଶକ :

ବିଜୟ କୁମାର ବେହେରା

ଡୋର ସେଣ୍ଟର

ନୀଳାଦ୍ରି ବିହାର, ଭୁବନେଶ୍ୱର–୨୧

# Bhanda Samhar

*By :*

Dr. Kruttibas Nayak

(National Award Winner Writer)

VIM-55, Sailashree Vihar, Bhubaneswar-21

Mob. : 9937743508

Publisher :

**Door Centre**

Niladri Vihar, Bhubaneswar-21
Mob. : 9338351999,

ISBN-978-93-87968-32-5

1st Edition - **2015**

Price : ₹ **20**

Source: Author, Digitized by PPRACHIN, SOA

# ପ୍ରାକ୍‌କଥନ

ଆମ ଦେଶରେ ବହୁ ମୁନିଋଷି ସାଧନା କରି ତା'ର ଫଳକୁ ଲୋକହିତରେ ଲଗାଉଥିଲେ । ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ନିଗମାନନ୍ଦ ସରସ୍ୱତୀଙ୍କ ପରି ମହାପୁରୁଷମାନେ ନିଜକୁ କେବେ ଜନତାଙ୍କର ବାବା ବୋଲି କହି ଦାନ ବା ଦକ୍ଷିଣା ନେଉ ନ ଥିଲେ । ସେମାନଙ୍କର ସମ୍ପତ୍ତି ବଢ଼ାଇବାର ଲାଳସା ନ ଥିଲା । ଏବେ ବର୍ଷାଦିନିଆ ଛତୁ ପରି ଅସଂଖ୍ୟ ଠକ ନିଜକୁ ସାଧୁ ସନ୍ୟାସୀ ବୋଲି ପ୍ରଚାର କରି ମାୟାଜାଲରେ ସରଳ ବିଶ୍ୱାସୀ ଓ ଅନ୍ଧବିଶ୍ୱାସୀ ନରନାରୀଙ୍କୁ ନିଜ ଆଡ଼କୁ ଟାଣି ନେଉଛନ୍ତି । ମିଥ୍ୟା ଭବିଷ୍ୟତ ବାଣୀ ସହ ଅସାଧ ସାଧନ କରାଇଦେବାର ପ୍ରତିଶ୍ରୁତି ଦେଇ ଲୋକଙ୍କ ମନରେ ଭ୍ରମ ସୃଷ୍ଟି କରୁଛନ୍ତି ।

ଅନେକ ରୋଗ ଅଛି, ଯାହା ବିନା ଚିକିତ୍ସାରେ ବଳେବଳେ ଭଲ ହୋଇଯାଏ । ସବୁ ସାପଦାନ୍ତରେ ବିଷ ନ ଥାଏ କିମ୍ବା ସବୁ ସମସ୍ୟା ମଣିଷ ପାଇଁ ସ୍ଥାୟୀ ହୋଇ ରହେନାହିଁ । ଏକଥା ସଚେତନ ମଣିଷ ଜାଣନ୍ତି । କୌଣସି ଠକ, ବଦମାସ ମିଛ ତନ୍ତ୍ର ମନ୍ତ୍ର ବଳରେ ଏଗୁଡ଼ିକୁ ଠିକ୍ କରିପାରିବେ ନାହିଁ । କେତେକ ଅଳସୁଆ, ଠକ ଓ ଅପରାଧୀ ମଣିଷ ସାଧୁଛଳରେ ପ୍ରଶାସନର ଆଢୁଆଳରେ ରହି ଲୋକଙ୍କୁ ଭୁଆଁ ବୁଲାଇ ସମାଜକୁ କଳୁଷିତ କରୁଛନ୍ତି । ଧୀରେ ଧୀରେ ସେମାନେ ନିଜର ଧନବଳ ଓ ଗୁଣ୍ଡାବଳ ସଂଚୟ କରି ଭୟଙ୍କର ପରିସ୍ଥିତି ସୃଷ୍ଟି କରୁଛନ୍ତି । ଆଜିର ବିଜ୍ଞାନ ଯୁଗରେ ଏ ସବୁକୁ ପରୀକ୍ଷା ନିରୀକ୍ଷା କରିବାର ବେଳ ଆସିଛି । କାହାରି ମନଗଢ଼ା ଚାଟୁକଥାରେ ଆମେ ଢଳି ନ ଯାଇ ସଚେତନ ହେବା । ଠକ ଭଣ୍ଡବାବାଙ୍କଠାରୁ ଦୂରେଇ ରହିବା । ଏହି ଉଦ୍ଦେଶ୍ୟରେ ଏହି ବ୍ୟଙ୍ଗ ହାସ୍ୟ ପୁସ୍ତକଟି ପାଠକଙ୍କୁ ସମର୍ପିତ ହେଲା ।

Source: Author, Digitized by PPRACHIN, SOA

# ସୂଚିପତ୍ର





Source: Author, Digitized by PPRACHIN, SOA



# ଭଣ୍ଡବାବା ରହସ୍ୟ



ଶୁଣ ମୋର ପ୍ରିୟ ଭକ୍ତ ଶୁଣ ନରନାରୀ,
ବାବା ହେବା କଉଶଳ କହୁଛି ବିସ୍ତାରି ।
ବାବା ହେବ ଯଦି ଆଗ ବଦଳାଅ ନାମ,
ଛଦ୍ମ ନାମ ରଖି କୃଷ୍ଣ କରିବ କୀର୍ତ୍ତନ ।
ଗରିବ ଲୋକଙ୍କୁ ଦେବ ମାଗଣା ଭୋଜନ
ପ୍ରସାଦ ବାଣ୍ଟିଲେ ହେବ ସ୍ୱନାମ ଅର୍ଜନ ।
ଧନୀଲୋକ ଦେଖି ଚାନ୍ଦା ମାଗିବ ବିକଳେ
ବିଶ୍ୱଶାନ୍ତି ଯଜ୍ଞ କରୁଥିବ ବେଳେବେଳେ ।
ଆସିଯିବେ ବିଶ୍ୱାସରେ ସରଳ ବିଶ୍ୱାସୀ,
ଦାନବାକ୍ସରେ ପଡ଼ିବ ଧନ ରାଶିରାଶି ।
କିଛି ରାଜନୀତି ଲୋକ ରଖିବ ହାତରେ,
ବଡ଼ବଡ଼ିଆଙ୍କ ନାମ ରଖିବ ମନରେ ।
ସରକାରୀ ଜାଗା ଦେଖି କୁଡ଼ିଆ ମାଡିବ,
ଫୁଲ ଫଳ ଗଛ କିଛି ଯତନେ ରୋପିବ ।
ଆଶ୍ରମ କୁହ କି ମଠ ବାନା ଉଡ଼ାଇବ,
ଗୁପ୍ତ କୋଠରୀ ଗୋଟିଏ ଅନ୍ଧାରେ ରଖିବ ।
ଚାନ୍ଦା ଭେଦା ନେଇ ନିଜ ମନ୍ଦିର ଗଢ଼ିବ,
ରତ୍ନବେଦୀ ଗଢ଼ି ସିଂହାସନ ରଖିଥିବ ।
କାରବାର ହେଉଥିବ ସବୁ ଧର୍ମନାମେ,
ଗରମ କ୍ଷୀରିରେ ହାତ ଦେବ ସାବଧାନେ ।
କିଛି ମିଥ୍ୟାତନ୍ତ୍ର ଶିକ୍ଷା କରିବ ସାଧନ,
ଭଲକଥା ଜାଣିବାକୁ ଖୋଜିବ ପୁରାଣ ।



Source: Author, Digitized by PPRACHIN, SOA

ପ୍ରବଚନ ଦେବ ନିତି ଭକୁଆ ଭକତେ,
ନୀତିବାଣୀ ଶୁଣାଇବ ରଡ଼ି ଛାଡ଼ି ଗୀତେ ।
କିଛିଦିନ ଅନ୍ତେ ନିଜ ସାମ୍ରାଜ୍ୟ ବଢ଼ାଇ,
ନେତାଙ୍କୁ ଡାକିବ ମୁଖ୍ୟ ଅତିଥି ବନାଇ ।
ଧନଜନ ବୃଦ୍ଧି ହେବ ଆସିବେ ଯୁବତୀ,
ଯୁବାନାରୀ ମନେ ଥାଏ ପ୍ରବଳ ଭକତି ।
ଧୀରେ ଧୀରେ ତୁମ ପାଶେ ଗହଳି ଲାଗିବ,
ଆଶୀର୍ବାଦ ଦେଇ ନିରୋଳାରେ ଡକାଇବ ।
ଧନହୀନା ପୁତ୍ରହୀନା ଶରଣ ପଶିବେ,
କିଛି ଚତୁର ଲୋକ ବି ସାଥୀରେ ଆସିବେ ।
କିଛି ବିକଳିଆ ଲୋକ ଅସହାୟ ହୋଇ,
ତୁମ ଆଶ୍ରିତ ହୋଇବେ ଆଶ୍ରମରୁ ଖାଇ ।
ତୁମ ଗୁଣ ପ୍ରଚାରରେ ଲାଗିବେ ସେମାନେ,
ଯାହା ଦରକାର ତାହା ଆଣିବେ ତକ୍ଷଣେ ।
ତୁମେ ହେବ ଶିବ ବିଷ୍ଣୁ କୃଷ୍ଣ ଅବତାର,
ମାୟାଜାଲେ ଦେଖାଇବ ବିଚିତ୍ର ବେଭାର ।
ସରଳ ବିଶ୍ୱାସୀ ଲୋକେ ତୁମ ପାଦ ଛୁଇଁ,
ପ୍ରଚାର କରିବେ ତୁମେ ଜଗତର ସାଇଁ ।
ଅନ୍ଧକୁ ଦେଉଛ ତୁମେ ଦିବ୍ୟ ଚକ୍ଷୁଦାନ,
ଛୋଟା ଚାଲୁଛି ଆନନ୍ଦେ ଡାକି ବାବା ନାମ ।
ମଲା ମଣିଷ ଆସୁଛି ମଶାଣିରୁ ଫେରି,
ଦରିଦ୍ର ହେଉଛି ଧନୀ ବାବା ନାମ ଧରି ।
ପାଠଶାଠ ପଢ଼ା କିଛି ଦରକାର ନାହିଁ,
ଅଜ୍ଞାନ ଜ୍ଞାନୀ ହେଉଛି ବାବା ପାଦ ଛୁଇଁ ।



Source: Author, Digitized by PPRACHIN, SOA

ପାଦରୁ ଝରୁଛି ମଧୁ ଅଙ୍ଗୁଳିରୁ ଗଙ୍ଗା,
ମାଟି ଗାଈ କ୍ଷୀର ଢାଳେ ରୋଗୀ ହୁଏ ଚେଙ୍ଗା ।
ପାଣିରେ ଚାଲନ୍ତି ବାବା ପବନେ ଉଡ଼ନ୍ତି,
ଗୋବର ହାଣ୍ଡିରୁ ବାବା ଅମୃତ କାଢ଼ନ୍ତି ।
ଜୀଅନ୍ତା ଠାକୁର ସିଏ କଥାକୁହା ହରି,
ସବୁରୋଗ ଦୂର ହୁଏ ତାଙ୍କ ନାମ ଧରି ।
ତାଙ୍କରି ପଦକ ନିଅ ବାନ୍ଧିବ ଗଳାରେ,
ଜପିବ ବାବାଙ୍କ ନାମ ତୁଳସୀ ମାଳାରେ ।
କେତେ ରାଜନେତା ପଡ଼ି ତାଙ୍କ ପାଦତଳେ,
ଜିତିଛନ୍ତି ନିର୍ବାଚନ ତନ୍ତ୍ରମନ୍ତ୍ର ବଳେ ।
କେତେ ଟୋକା ବୁଲୁଛନ୍ତ ଗାଡ଼ି ଘୋଡ଼ା ଚଢ଼ି,
ସହରରେ ଗଢ଼ିଲେଣି କେତେ କୋଠାବାଡ଼ି ।
ଯିଏ ଥରେ ଯାଇ ବାବା କରୁଛି ଦର୍ଶନ,
ଦାନ ଦେଲେ ମନୋବାଞ୍ଛା ହେଉଛି ପୂରଣ ।
ପ୍ରଚାରକ ବୁଲି ଗୁଣ କରିବେ ବର୍ଣ୍ଣନା,
ନିଜ ନାମେ ବହି ଛାପି ବାଣ୍ଟିବ ମାଗଣା ।
ଚାହୁଁ ଚାହୁଁ ମିଳିଯିବ ସୁନାମ ତୁମର,
ପାଇଯିବ ଧନମାନ କାମର ସାଗର ।
ମାପିଚୁପି ଚାଲୁଥିବ କହୁଥିବ ଧୀରେ,
ମେଡ଼ିଆବାଲାଠୁଁ ସଦା ରହୁଥିବ ଦୂରେ ।
ନହେଲେ ମୋ ପରି ଯିବ ଚଉଦୁଆରକୁ,
ଛେପ ପକାଇବେ ଲୋକ ଟାଣିବେ ଚୁଟିକୁ ।





Source: Author, Digitized by PPRACHIN, SOA

# ବାବାଙ୍କ ମୁଖକୁ ଚାହିଁ

(ସୀତାଙ୍କ ମୁଖକୁ ଚାହିଁ ବୋଲଇ ରାବଣ ସ୍ୱର)

**ଭକ୍ତ ଉବାଚ :**

ବାବାଙ୍କ ମୁଖକୁ ଚାହିଁ କହୁଛି ଭକତ
ଏମିତି କେମିତି ହେଲା କେ ଖୋଳିଲା ଗାତ, କୁହ ଖୋଲି ହେ,
ସେ ଗାତକୁ ତାକୁ ଦେବି ପେଲି ହେ । ୧ ।

**ବାବା ଉବାଚ :**

ମଥାନତ କରି ବାବା କହନ୍ତି ସୁଧୀରେ
ମିଡ଼ିଆବାଲା ମୋ ଗୋଛି କାଟିଦେଲେ ଖୁରେ, ଶାଣଦିଆ ହେ,
ଆଶ୍ରମରେ ଲାଗିଗଲା ନିଆଁ ହେ । ୨ ।

ଗୁପତ ଲୀଳା ରହସ୍ୟ ଆଉ କିଏ ଜାଣେ,
କେତେ ପରୀ ଆସୁଥିଲେ ତାକୁ କିଏ ଗଣେ, କୁହ ତୁମେ ହେ,
କେତେ କୋଟି ଟଙ୍କା ଅଛି କହିଛି କେ ଜଣେ ହେ । ୩ ।

ପୋଲିସ ଥିଲା ମୋ ହାତେ ଥିଲା ପ୍ରଶାସନ,
ଆଖି ବୁଜି କରୁଥିଲେ ମୋ ଗୁଣ କୀର୍ତ୍ତନ, ଦିନ ରାତି ହେ,
ତାଙ୍କ ପାଇଁ ହେଲି କୋଟିପତି ହେ । ୪ ।

କେହି ଜଣେ ଗୃହଶତ୍ରୁ ବିଭୀଷଣ ସାଜି,
ମିଡ଼ିଆକୁ କହିଦେଲା ଏ' ଭଣ୍ଡ ବାବାଜୀ, ୟା'କୁ ଧର ହେ,
ନାରୀ ଚୋରି ପାଜିକାମ ମୋର ହେ । ୫ ।



Source: Author, Digitized by PPRACHIN, SOA

ହିସାବ ରକ୍ଷକ ପୁଣି ଯେତେକ ସେବକ,
କିଏ କାହିଁ ଲୁଚିଗଲେ କଟିଗଲା ବେକ, ପ୍ରଶ୍ନ ବାଣରେ,
ଭାଙ୍ଗିଗଲା ମୋର ଟାଣପଣ ରେ । ୬ ।

କେମିତି ମୁଁ ଦେଖାଇବି ମୁହଁ ମାନ୍ୟବର,
କଳଙ୍କିତ ହୋଇଗଲା ମୋର ଏ ଶରୀର, କହିଦିଅ ହେ,
ଆଶ୍ରମକୁ ଆସିବେନି ଝିଅ ହେ । ୭ ।

ଯାହା ଅଛି ଗୁପ୍ତଘରେ ସବୁ ନେଇଯାଅ,
ଅପରାଧ ଶାଖା ଲୋକେ ବୁଲାଇ ଦେଖାଅ, ଖାଲିଘର ହେ
କି ଦେଖିବେ ଦେଖନ୍ତୁ ଏଥର ହେ । ୮ ।

ମୋ ପୁଅକୁ କହିଦିଅ ଲୁଚିଯାଉ କାହିଁ,
ଆପୋଲରେ ରଖିଦେଉ ତା' ଗାଡ଼ିକୁ ନେଇ, ଧୂଳିଦେଇ ହେ,
ଚାଲିଯାଉ ଧନରତ୍ନ ନେଇ ହେ । ୯ ।

ଯାଉଛି ଚଉଦୁଆର ଅପରାଧୀ ସାଜି,
ଭକତ ଭକତା ଆଉ ପାଇବେନି ଖୋଜି, କାରାଗାରରେ,
ବଳକା ଜୀବନ ଯିବ ମୋର ରେ । ୧୦ ।





Source: Author, Digitized by PPRACHIN, SOA

# ଭଣ୍ଡବାବାଙ୍କ ଭକ୍ତର ବିଳାପ

ଭକତ କାନ୍ଦୁଛି ବାବା ଓଡ଼ିଶା କାନ୍ଦୁଛି,
ଓଡ଼ିଶାର ନରନାରୀ କହୁଛନ୍ତି ଛି... ଛି... । (ଘୋଷା)
ଭଲ ଲୀଳା ଲଗାଇଲ ଯାଦୁମନ୍ତ୍ର ବଳେ,
ଧନ ଯଉବନ ଲୁଟିନେଲ କଉଶଳେ ।
ତୁମ ପାପ ଧରାପଡ଼ି ଦାଣ୍ଡରେ ଗଡ଼ୁଛି,
ଭକତ କାନ୍ଦୁଛି ବାବା ଓଡ଼ିଶା କାନ୍ଦୁଛି । ୧ ।
ପ୍ରଭୁ ବଦଳରେ ଲୋକେ କହୁଛନ୍ତି ଭଣ୍ଡ,
ମିଛ ଭଗବାନ ତୁମେ ଅକାଳ କୁଷ୍ମାଣ୍ଡ ।
ସାଧୁ ସମାଜରେ ଆଜି କଳଙ୍କ ଲାଗୁଛି,
ଭକତ କାନ୍ଦୁଛି ବାବା ଓଡ଼ିଶା କାନ୍ଦୁଛି । ୨ ।
ନାରୀମାଂସ ଲୋଭୀ ଭଣ୍ଡ ଧନଲୋଭୀ ବାବା,
ତୁମ କାରନାମା ଦେଖି ପ୍ରଶାସନ କାବା ।
ତୁମ ମାୟାଜାଲ ଛିଡ଼ି ତୁମକୁ ମାରୁଛି,
ଭକତ କାନ୍ଦୁଛି ବାବା ଓଡ଼ିଶା କାନ୍ଦୁଛି । ୩ ।
ଭକତ ଢାଳିଲେ ଧନ ମାୟାଜାଲେ ପଡ଼ି,
ସେଇ ଧନରେ କିଣିଲ ଦାମୀ କୋଠାବାଡ଼ି ।
ତୁମ ଠକାମୀରେ ପଡ଼ି ଭାଗ୍ୟକୁ ନିନ୍ଦୁଛି,
ଭକତ କାନ୍ଦୁଛି ବାବା ଓଡ଼ିଶା କାନ୍ଦୁଛି । ୪ ।





Source: Author, Digitized by PPRACHIN, SOA

# ବୃନ୍ଦାଭକ୍ତର କ୍ରୋଧ

(କାହିଁଗଲେ ମୁରଲୀ ଫୁଙ୍କା ସ୍ୱର)

କାହିଁଗଲା ସାରଥୀ ଭଣ୍ଡ ?
ଯୁବତୀ ରଙ୍କୁଣା ଅରଣା ଷଣ୍ଢ । (ଘୋଷା)

ପ୍ରବଚନ ଦେଇ ଲୋକଙ୍କୁ ଭଣ୍ଡେଇ,
କେତେ କୋଟି ଟଙ୍କା ନେଇଛି ରୁଣ୍ଡେଇ ।
ଭଗବାନ ତାକୁ ଦିଅନ୍ତୁ ଦଣ୍ଡ,
କାହିଁଗଲା ସାରଥୀ ଭଣ୍ଡ । ୧ ।

ମିଛୁଆ କପଟୀ ବିଶ୍ୱାସ ଜନ୍ମାଇ,
କେତେ ନାରୀଙ୍କୁ ସେ ଦେଇଛି ଉଡ଼ାଇ ।
ଜଣାପଡ଼େ ନାହିଁ ତା' କଳାକାଣ୍ଡ,
କାହିଁଗଲା ସାରଥୀ ଭଣ୍ଡ । ୨ ।

ବିଷ ଭରିଦେଲା ସରଳ ମନରେ,
ଲୁଟିନେଲା ଧନ ବିଭୂତି ଦାନରେ ।
ନାଗ ନୁହେଁ ସେ ତ ମାହାରା ଧଣ୍ଡ,
କାହିଁଗଲା ସାରଥୀ ଭଣ୍ଡ । ୩ ।



Source: Author, Digitized by PPRACHIN, SOA

# ଧୂର୍ତ୍ତଭକ୍ତର ମିନତି

(ମଲ୍ଲୀମାଳ ଶ୍ୟାମକୁ ଦେବି ସ୍ୱର)

ଟଙ୍କାମାଳ ବାବାଙ୍କୁ ଦେବି–ମନ ତୋଷିବି
ନ ମାନିଲେ ତାଙ୍କ ପାଦେ ଶରଣ ମୁଁ ପଶିବି । (ଘୋଷା)

ଯାଉ ମୋ ଘର ସଂସାର, ବାବା ହିଁ ଇଷ୍ଟ ଈଶ୍ୱର
ନେଇ ଘରଣୀକୁ ମୋର ଦେବି ତାଙ୍କୁ ଉପହାର ।
ନ ମାନିଲେ ତାଙ୍କ ମନ ଯୁବତୀକୁ ଭେଟିବି ।
ଟଙ୍କାମାଳ ବାବାଙ୍କୁ ଦେବି– ମନ ତୋଷିବି । ୧ ।

କରିଛି ତାଙ୍କୁ ବିଶ୍ୱାସ, ମଠରେ କରିବି ବାସ,
ବାବାଙ୍କ ଗୁପ୍ତ ଖବର, ଜମିଜମା କାରବାର ।
ବୁଝିବି ତାଙ୍କ ହିସାବ ମଦରେ ମୁଁ ଭାସିବି ।
ଟଙ୍କାମାଳ ବାବାଙ୍କୁ ଦେବି– ମନ ତୋଷିବି । ୨ ।

ରାତିକେ ହାତୀ କିଣିବି, ଦାମୀ ଗାଡ଼ିରେ ବୁଲିବି,
ବାବାଙ୍କ ଗୁଣ କୀର୍ତ୍ତନ, କରୁଥିବି ନିତିଦିନ ।
ତାଙ୍କ ଅନ୍ତେ ବାବାହୋଇ ସିଂହାସନେ ବସିବି ।
ଟଙ୍କାମାଳ ବାବାଙ୍କୁ ଦେବି– ମନ ତୋଷିବି । ୩ ।





Source: Author, Digitized by PPRACHIN, SOA

# ପତ୍ନୀଙ୍କୁ ଭକ୍ତର ସାନ୍ତ୍ୱନା

(ପଲ୍ଲୀଗୀତ ସ୍ୱର)

କାନ୍ଦନା କାନ୍ଦନା ସଖୀ ଲୁହ ଝରେଇ, ସଖୀ ଲୁହ ଝରେଇ
ଧରା ପଡ଼ିଲେଣି ବାବା·ହୋଟେଲ ଯାଇ । (ଘୋଷା)
ସାଥେ ଯୁବତୀ ଥିଲେ, ମଦ ମାଂସ ଖାଇଲେ
ଆଗରୁ କେତେଥର, ହୋଇଛି କାରବାର
ଏଥର ମିଡ଼ିଆବାଲା ଦେଲେ ଧରେଇ ।
କାନ୍ଦନା କାନ୍ଦନା ସଖୀ ଲୁହ ଝରେଇ । ୧ ।
ପ୍ରଭୁ ସାରଥୀ ଦେବ ହୋଇଲେ ପୂର୍ବ ଦେବ (ଅସୁର)
ଠକ ଚୋରଙ୍କ ମେଳି, ଚଟାଉଥିଲେ ଧୂଳି
ନେଇ ଯାଉଥିଲେ ଧନ ଯାଦୁ ଦେଖେଇ ।
କାନ୍ଦନା କାନ୍ଦନା ସଖୀ ଲୁହ ଝରେଇ । ୨ ।
ଚଉଦୁଆର ମେଳା, ବାବାଙ୍କ ସହ ଚେଲା
ରହିବେ ମଠ କରି, ଭଜିବେ ନାରୀ ନାରୀ ।
କେନ୍ଦ୍ରାପଡ଼ାକୁ ପୋଲିସ ଦେଲା ଡରେଇ ।
କାନ୍ଦନା କାନ୍ଦନା ସଖୀ ଲୁହ ଝରେଇ । ୩ ।
ଯେତେକ ନରନାରୀ, ତାଙ୍କ ନାମକୁ ଧରି,
ନିଜ ଇଷ୍ଟକୁ ଭୁଲି, ଖାଇଲେ ବାବା ଗୁଳି ।
ଏବେ ସିଏ କାନ୍ଦୁଛନ୍ତି ମୁହଁ ଲୁଚେଇ ।
କାନ୍ଦନା କାନ୍ଦନା ସଖୀ ଲୁହ ଝରେଇ । ୪ ।



Source: Author, Digitized by PPRACHIN, SOA

# ବାବାଙ୍କ ଡାହୁକ ଡାକ

ଆକାଶରେ ଉଡ଼େ ଗୁଡ଼ି,
ସାରଥୀ ଆଶ୍ରମ ବାନା ଛିଡ଼ିଗଲା ମାଡ଼ିଗଲା ବାତ୍ୟା ବଢ଼ି
ହୋ ଭକତେ... । ୧ ।

ପାହିଲା ଅନ୍ଧାର ରାତି,
କପଟିଆ ମିଛ ଧରାପଡ଼ିଗଲା, ଥରିଉଠେ ଭକ୍ତଛାତି
ହୋ ଭକତେ... । ୨ ।

ଉଇଁଲା ଆକାଶେ ଜହ୍ନ,
ଭଣ୍ଡବାବା ଏବେ ଚଉଦୁଆରରେ, ଦେଖନ୍ତି ପଛ ସପନ
ହୋ ଭକତେ... । ୩ ।

କାଟିଲେ ବେକୁ ଲକେଟ,
ଦୋକାନର ନାମ ବଦଳି ଗଲାଣି, ବାବାଙ୍କ ପିଠିରେ ଛାଟ
ହୋ ଭକତେ... । ୪ ।

ଯୁବତୀ ଲୁଚିଲେ କାହିଁ,
କିଏ କେତେ ସେବା କରୁଥିଲେ ଲୁଚି, ବାବାଙ୍କ ମୁଖକୁ ଚାହିଁ
ହୋ ଭକତେ... । ୫ ।

କୋଟି ଟଙ୍କା କାରବାର,
ବାବାଙ୍କ କବାଟ ଖୋଲି ଦେଖିଦେଇ, କାବା ହେଲେ ସରକାର
ହୋ ଭକତେ... । ୬ ।

ନିଷ୍କାମ ଭକତି ପ୍ରେମ,
ତା'ଠାରୁ ଅଧିକ ସାରଥୀର ଲୀଳା, ଦେଖି ହାରିଯିବ ଯମ
ହୋ ଭକତେ... । ୭ ।





Source: Author, Digitized by PPRACHIN, SOA

# କି ହେବ ବାବା ହୋଇଲେ

(କି ହେବ ଶୁଆ ପୋଷିଲେ ସ୍ୱର)

କି ହେବ ବାବା ହୋଇଲେ,

ମଠରେ ମାତା ନ ଥିଲେ କି ହେବ ବାବା ହୋଇଲେ । (ଘୋଷା)

ଯାଦୁ ମନ୍ତ୍ର ନ ଜାଣିଲେ, ତନ୍ତ୍ର ମନ୍ତ୍ର ନ ଜାଣିଲେ

ପଦ୍ମୁଁ ମଧୁ ନ ଝରିଲେ, କି ହେବ ବାବା ହୋଇଲେ । ୧ ।

ବିଭୂତି ଯାଚି ନ ଦେଲେ, କଥାରେ ମିଠା ନ ଥିଲେ

ପଲଙ୍କ ସେବା ନ କଲେ, କି ହେବ ବାବା ହୋଇଲେ । ୨ ।

ପ୍ରବଚନ ଦେଉଥିଲେ, ନାରୀ ଯଦି ନ ଶୁଣିଲେ

ନିରୋଳାରେ ନ ଭେଟିଲେ, କି ହେବ ବାବା ହୋଇଲେ । ୩ ।

ପାଦୁକା ସେବୁ ନ ଥିଲେ, ପାଶେ ଯୁବତୀ ନଥିଲେ

ଚାମର ଝାଡୁ ନଥିଲେ, କି ହେବ ବାବା ହୋଇଲେ । ୪ ।

ଗଞ୍ଜେଇ ଟାଣୁ ନ ଥିଲେ, ବିଦେଶୀ ପାଣି ନ ଥିଲେ,

ସିଂହାସନେ ବସିଥିଲେ, କି ହେବ ବାବା ହୋଇଲେ । ୫ ।

ଜମିବାଡ଼ି ନ କିଣିଲେ, ଖାଲି ମନ୍ଦିର ରହିଲେ,

ଚାମଚା ପାଶେ ନ ଥିଲେ, କି ହେବ ବାବା ହୋଇଲେ । ୬ ।

ମିଛ କଥା ନ କହିଲେ, ଦାନ ଦକ୍ଷିଣା ନ ନେଲେ,

ନୂଆ ଚେଲା ନ ବଢ଼ିଲେ, କି ହେବ ବାବା ହୋଇଲେ । ୭ ।



Source: Author, Digitized by PPRACHIN, SOA

ଗୁପ୍ତ କୋଠରୀ ନ ଥିଲେ, ସୁନାରୁପା ନ ରଖିଲେ,

ସୁରକ୍ଷା କର୍ମୀ ନ ଥିଲେ, କି ହେବ ବାବା ହୋଇଲେ । ୮ ।

ବନ୍ଧୁକ ଗୁଳି ନ ଥିଲେ, ଖଣ୍ଡାରେ ଧାର ନ ଥିଲେ,

ଗୁଣ୍ଡା ଭେଣ୍ଡା ନ ପୋଷିଲେ, କି ହେବ ବାବା ହୋଇଲେ । ୯ ।

ପୋଲିସ ହାତେ ରହିଲେ, ଦିଆନିଆ ହେଉଥିଲେ, ଯିଏ ଯାହା କହୁଥିଲେ

କି ହେବ ମିଡ଼ିଆ ଥିଲେ । ୧୦ ।





Source: Author, Digitized by PPRACHIN, SOA

# ସାରଥୀ ହେ ସାରଥୀ

(ମାଧବ ହେ ମାଧବ ସ୍ୱର)

ସାରଥୀ ହେ ସାରଥୀ, ହେ ସାରଥୀ
ତୁମ ମାୟାବଳେ ମୋହିନୀ ମନ୍ତ୍ରରେ
ଲକ୍ଷେ ନାରୀ ମନ ପାରିଲ ଜିତି । ଘୋଷା ।
ଦେଉଥିଲ ତୁମେ ମିଠା ପ୍ରବଚନ, ପାପ କର୍ମଠାରେ ରହିଥିଲା ମନ ।
ତନୁ ମନ ଧନ ଲୁଟି ନେଇଗଲ, ଶୁଖିଲା ନଈରୁ ମାଛ ମାରିନେଲ
ନିଜ ନାମ ଧାମ ଲୁଚାଇ ମିଛରେ ରହିଥିଲ ଚୋରା ପ୍ରେମରେ ମାତି ।୧।

ପାଦରୁ ଝରାଇ ମିଛ ମହୁଧାର, ହାତରୁ ପାଉଁଶ କରିଲ ବାହାର
ଜଗନ୍ନାଥଙ୍କର ମଥାର ତୁଳସୀ, ତୁମରି ପାଦରେ ଲାଗେ ରାଶି ରାଶି
ଜମି କାରବାର, ଯୁବତୀ ବେପାର ତୁମ ପାଇଁ ହେଲା ଅସଲ ନୀତି ।୨।

ଫୁଲମାଳ ପିନ୍ଧି ଦିଶ କି ସୁନ୍ଦର, ଧରା ପଡ଼ି ଏବେ ଦିଶ ସତେ ଚୋର
କେନ୍ଦ୍ରାପଡ଼ା ଛାଡ଼ି ଆସିଲ କଟକ, ଚଉଦୁଆରରେ ହୋଇଲ ଅଟକ
ତୁମ ମିଛ ଲୀଳା ହେଲା ତୁମ କୀଳା, ଫାଟିଯାଏ ତୁମ ଭକତ ଛାତି ।୩।

କେନ୍ଦରାପଡ଼ାକୁ ଫେରିବନି ଆଉ, ତୁମରି ପାଦରୁ ଝରିବନି ମହୁ
କଳଙ୍କ ଲାଗିଲା ଓଡ଼ିଶା ମାଟିରେ, ତୁମ ନିନ୍ଦା ଏବେ ବାଟରେ ଘାଟରେ
ଲୀଳାଖେଳା ସିନା ସାରିଦେଇ ଗଲ, ଏବେ ଆସିଗଲା ଅନ୍ଧାର ରାତି ।୪।
ସାରଥୀ ହେ ସାରଥୀ...





Source: Author, Digitized by PPRACHIN, SOA

# ପଡ଼ିଛି ଚହଲ

(ଲୋକଗୀତ ସ୍ୱର)

ପଡ଼ିଛି ଚହଲ ସନ୍ତୋଷ ରାଉଳ ଗୁଆ ବେପାରକୁ ଛାଡ଼ି,
ନାଆଁ ବଦଳାଇ ସାରଥୀ ରଖିଛି କାଟିଦେଇ ନିଶଦାଢ଼ି–
ସଜନୀରେ । ୧ ।

ସରଳ ଲୋକଙ୍କୁ ଭଣ୍ଡେଇବା ପାଇଁ ଦେଖାଉଛି ଯାଦୁଖେଳ,
ସିମେଣ୍ଟ ଗାଈରୁ କ୍ଷୀର ଝରାଉଛି ସମ୍ପତ୍ତି କରୁଛି ଠୁଳ–
ସଜନୀରେ । ୨ ।

ଠକ ଅଳସୁଆ ବିକଳ ଭକତ ଆସନ୍ତି ବାଇଆ ହୋଇ,
ଯାଦୁଖେଳ ଦେଖି ଧନ୍ୟ ମନେକରି କହନ୍ତି ଗାଆଁରେ ଯାଇ–
ସଜନୀରେ । ୩ ।

ସବୁ ରୋଗ ଦୁଃଖ ଦୂର ହୋଇଯାଏ ବାବାଙ୍କୁ ଦର୍ଶନ କଲେ,
ପାଦରୁ ତାଙ୍କର ଝରିପଡ଼େ ମହୁ ଗୋଡ଼କୁ ହଲେଇ ଦେଲେ–
ସଜନୀରେ । ୪ ।

ଅନନ୍ତ ଶୟନ କରୁଛନ୍ତି ବାବା ରତ୍ନ ପଲଙ୍କରେ ଶୋଇ,
ପାଟରାଣୀ ପରି ସହସ୍ର ଯୁବତୀ ସେବା କରୁଛନ୍ତି ଯାଇ–
ସଜନୀରେ । ୫ ।

ସୁରମ୍ୟ ମନ୍ଦିର ଗଢ଼ି ଉଠିଲାଣି ସାରଥୀ ମନ୍ଦିର ନାମେ,
ସାରଥୀ ପ୍ରସାଦ ମାଗଣାରେ ମିଳେ ଭକ୍ତ ରଖିଥାଅ ମନେ–
ସଜନୀରେ । ୬ ।



Source: Author, Digitized by PPRACHIN, SOA

ଯାହା ନ ପାରନ୍ତି ଜଗନ୍ନାଥ ପ୍ରଭୁ ଡାକିଲେ ଜୀବନଯାକ,
ହାତ ହଲେଇଲେ ହେଇଯାଏ ତାହା ସାରଥୀ ବାବାଙ୍କ ଡାକ–
ସଜନୀରେ । ୭ ।

ଗୋବରୀ କୂଳରେ ବାରିମୂଳ ଗ୍ରାମ ହୋଇଛି ଏବେ ଶ୍ରୀକ୍ଷେତ୍ର,
ସ୍ୱୟଂ ନାରାୟଣ ଅବତରି ଆସି ଖୋଲିଛନ୍ତି ମୁକ୍ତିପଥ–
ସଜନୀରେ । ୮ ।

ଅଳପ ପାଠୁଆ ଅସହାୟ ଲୋକେ ତାଙ୍କ ମିଛକଥା ଶୁଣି,
ଧନଲୋଭୀ କିଛି ବାଇଆ ବେପାରୀ ଗରିବଙ୍କୁ ନେଲେ ଟାଣି–
ସଜନୀରେ । ୯ ।

ଦର୍ଶନୀ ଦକ୍ଷିଣା ପାଦୁକା ପୂଜନେ ଆସିଲା ଅମାପ ଧନ,
କୋଠାବାଡ଼ି ଜମି କିଣାବିକା ହେଲା ଚାଲୁହେଲା ପ୍ରବଚନ–
ସଜନୀରେ । ୧୦ ।

ଶାସ୍ତ୍ର ଜ୍ଞାନହୀନ ଚତୁର ସାରଥୀ ନିଜର ପ୍ରଚାର କରି,
ପୋଲିସ ନେତାଙ୍କୁ କାବୁ କରିନେଲା ଦେଇ ଧନ ଲାଞ୍ଚ ନାରୀ–
ସଜନୀରେ । ୧୧ ।

ଅଣସର ହେଲେ ସାରଥୀଙ୍କୁ କେବେ ବଡ଼ ହୋଟେଲକୁ ଯାଏ
ସାଥୀରେ ଯୁବତୀ ସେବା କରିବାକୁ ସୋମରସ ପାଶେ ଥାଏ–
ସଜନୀରେ । ୧୨ ।

ବିପୁଳ ସଂପତ୍ତି ନିଶ୍ଚୟ ବିପତ୍ତି ଏକଥା ନ ଥିଲା ଜଣା,
ଆଖି ଥାଉଥାଉ ସାରଥୀ ବିଚରା ହୋଇଗଲା ବାଟବଣା–
ସଜନୀରେ । ୧୩ ।



Source: Author, Digitized by PPRACHIN, SOA

ଯିଏ ଯେତେ କହୁ ସବୁ ସତ କଥା ଲୁଚି ରହି ଯାଉଥିଲା,
ବିଳମ୍ବ ହେଲେ ବି ଗଣ ମାଧ୍ୟମରେ ସବୁ ପେଡ଼ି ଖୋଲିଗଲା–

ସଜନୀରେ । ୧୪ ।

ସାରଥୀ ରାକ୍ଷସ ସାମ୍ରାଜ୍ୟ ଭାଙ୍ଗିଲା ବିଲୁଆ ମାରନ୍ତି ଡିଆଁ,
କେତେ ଯେ କଳଙ୍କ କାହାଣୀ ଆସୁଛି ସବୁ ଲାଗେ ନୂଆ ନୂଆ–

ସଜନୀରେ । ୧୫ ।





Source: Author, Digitized by PPRACHIN, SOA

# ଫୁଲ ବଉଳ ବେଣୀ

କଳି କାଳ ଆସିଗଲା ଲୋ ଫୁଲ ବଉଳ ବେଣୀ,
ରାମନାମ ଭୁଲି ହରିନାମ ଭୁଲି, ସାରଥୀ ଜପନ୍ତି ଚେଲା ଲୋ । ୧ ।
ଭଣ୍ଡ ବାବାଜୀଙ୍କ ଯୁଗ ଲୋ ଫୁଲ ବଉଳ ବେଣୀ,
ଲଣ୍ଡ ଭଣ୍ଡ କରି ଠକେଇବା କାମ ନାରୀଚୋରି କାମ ଆଗ ଲୋ । ୨ ।
ନିଜ ନାମ ବଦଳାଇ ଲୋ ଫୁଲ ବଉଳ ବେଣୀ,
ତନ୍ତ୍ରମନ୍ତ୍ର ବଳେ ଲୁଟି ନିଅନ୍ତି ସେ ନିଜକୁ ଈଶ୍ୱର କହି ଲୋ । ୩ ।
ଦୁଃଖୀ ରଙ୍କି ଲୋକ ଡାକି ଲୋ ଫୁଲ ବଉଳ ବେଣୀ,
ଧନ ଯଉବନ ମାନ ମହତକୁ ଲୁଟିଲେ ସୁଯୋଗ ଦେଖି ଲୋ । ୪ ।
ଦେଖାଇ ଯାଦୁ ଭେଳିକି ଲୋ ଫୁଲ ବଉଳ ବେଣୀ,
ଭଣ୍ଡ ଚେଲା କିଛି ଗଦ ଶୁଙ୍ଘେଇକି ନିଅନ୍ତି ଅରଗଳିକି ଲୋ । ୫ ।
ବସିଛି ସାରଥୀ ଜାଲ ଲୋ ଫୁଲ ବଉଳ ବେଣୀ,
ସେ ଜାଲରେ ପଡ଼ି ନିରୀହ ଜନତା ହେଉଛନ୍ତି କଲବଲ ଲୋ । ୬ ।
ପାଠଶାଠ କିଛି ନାହିଁ ଲୋ ଫୁଲ ବଉଳ ବେଣୀ,
ମୋହିନୀ ମନ୍ତ୍ରରେ ଜଗତ ଜିତି ଯେ କେନ୍ଦ୍ରାପଡ଼ା ଗଲା ଖାଇ ଲୋ । ୭ ।
ନିଜକୁ କୃଷ୍ଣ ସଜାଇ ଲୋ ଫୁଲ ବଉଳ ବେଣୀ,
ଓଡ଼ିଶା ମାଟିକୁ ଗୋପଦାଣ୍ଡ କଲା ରସିକା ଯୁବତୀ ପାଇଲୋ । ୮ ।
ରହସ୍ୟମୟ ତା' ଗତି ଲୋ ଫୁଲ ବଉଳ ବେଣୀ,
କେତେ ଠକ ଭଣ୍ଡ ତାଙ୍କ ନାମ ଧରି ସୁଖରେ ରହିଲେ ମାତି ଲୋ । ୯ ।
ଲୁଟିଲେ ଗରିବ ଧନ ଲୋ ଫୁଲ ବଉଳ ବେଣୀ,
ମିଛ ସତ କହି ପ୍ରଚାର କରିଲେ ଗାଇଲେ ସାରଥୀ ଗୁଣ ଲୋ । ୧୦ ।



Source: Author, Digitized by PPRACHIN, SOA

ବେକରେ ଲକେଟ ବାନ୍ଧି ଲୋ ଫୁଲ ବଉଳ ବେଣୀ,
ମୂର୍ଖକୁ ଭଜିଲେ ଥୋକେ ବୋକା ଲୋକ ଗାଇଲେ ଭଜନ ଛନ୍ଦି ଲୋ । ୧୧ ।
ଧରା ପଡ଼ିଗଲା ଲୀଳା ଲୋ ଫୁଲ ବଉଳ ବେଣୀ,
ବାବାଜୀ ନୁହେଁ ସେ ପାଜିଟାଏ ବୋଲି ସଜାଇଲା ନିଜ କୀଳା ଲୋ । ୧୨ ।
କାରାଗାର ଗଲା ଠକ ଲୋ ଫୁଲ ବଉଳ ବେଣୀ,
ଧର୍ମ ସହିଲାନି ପାପ ବଢ଼ିଗଲା ଆଶ୍ୱସ୍ତ ହୋଇଲେ ଲୋକ ଲୋ । ୧୩ ।
ବିଭୂତିରୁ ପୁଅ ଜାତ ଲୋ ଫୁଲ ବଉଳ ବେଣୀ,
ନ ଶୁଣିବା କଥା ଶୁଣିଲା ଏ' କାନ ଖାଉଛି ସୁନାର ଭାତ ଲୋ । ୧୪ ।
ବାପ ଗୁଣେ ପୁଅ ଗୁଣୀ ଲୋ ଫୁଲ ବଉଳ ବେଣୀ,
ଚଉଦୁଆରରେ ଦୁହେଁ ତ ଦୁହିଁଙ୍କୁ ଦେଉଛନ୍ତି ଠକ ବାଣୀ ଲୋ । ୧୫ ।





Source: Author, Digitized by PPRACHIN, SOA

# ଭଣ୍ଡବାବା ଜଣାଣ

ହେ ବାରିମୂଳିଆ, ଗୋବରୀ କୂଳିଆ ବାବା ଛଦ୍ମବେଶଧାରୀ,
ସରଳ ମନରେ ଗରଳ ଭରୁଛ ଯାଦୁକୁ ଆଶ୍ରୟ କରି । ଘୋଷା ।

ତୁଚ୍ଛା ପାଉଁଶକୁ ବିଭୂତି କହୁଛ ପାଣିରେ ପକାଇ ସର,
ପାଦରେ ଲଗାଇ ରସାୟନ ପାଣି କହୁଛ ସେ ମଧୁଝର ।
ସିମେଣ୍ଟ ଗାଈରେ ଯନ୍ତ୍ର ଲଗାଇଛ ମିଠା କ୍ଷୀର ପଡ଼େ ଝରି,
ହେ ବାରିମୂଳିଆ, ଗୋବରୀ କୂଳିଆ ବାବା ଛଦ୍ମବେଶଧାରୀ । ୧ ।

ତୁମେ ଜାଣିଥିଲ ମୂରୁଖ ମଣିଷ ଅନ୍ଧବିଶ୍ୱାସରେ ବଶ,
ତୁମ ମାୟାଜାଲେ ଫସିଲେ ଯୁବତୀ କାମାଗ୍ନିରେ ଦିଅ ଝାସ ।
ଯେ କଲା ବିଶ୍ୱାସ ହେଲା ସର୍ବନାଶ ଘରକୋଣେ କାନ୍ଦେ ଡରି,
ହେ ବାରିମୂଳିଆ, ଗୋବରୀ କୂଳିଆ ବାବା ଛଦ୍ମବେଶଧାରୀ । ୨ ।

ସତ୍ୟମ୍ ତୁମର ବିଭୂତିରୁ ଜାତ ତୁମ କୂଟବୁଦ୍ଧି ନେଇ,
ସେ ଯୋଗ୍ୟ ସନ୍ତାନ କୋଟିପତି ହେଲା ପିତାମାତା ଜାଣେ ନାହିଁ ।
ଏବେ ଲୀଳାକର ଚଉଦୁଆରରେ ପୁଅକୁ ସାଥୀରେ ଧରି,
ହେ ବାରିମୂଳିଆ, ଗୋବରୀ କୂଳିଆ ବାବା ଛଦ୍ମବେଶଧାରୀ । ୩ ।





Source: Author, Digitized by PPRACHIN, SOA

# ଭଣ୍ଡବାବାର ଦଣ୍ଡଗୀତ

ମୁନି ଋଷି ଦେଶ ଏଇ ଭାରତ ଲୋ ଧର୍ମକୁ ବହୁତ ଡର ସଜନୀ ଲୋ,
ଧର୍ମକୁ ବହୁତ ଡର,
ମୁନି ଋଷି ପରି କେତେ ମଠ କରି ବସିଛନ୍ତି ଠକ ଚୋର ସଜନୀ ଲୋ,
ବସିଛନ୍ତି ଠକ ଚୋର ।
କିଏ ଧନପାଇଁ ନାମ ବଦଳାଇ କହୁଛି ମୁହିଁ ଈଶ୍ୱର ସଜନୀ ଲୋ,
କହୁଛି ମୁହିଁ ଈଶ୍ୱର,
କିଏ ପୁଣି ଜମି ମାଡ଼ି ବସିବାକୁ ଗଢୁଛି ନୂଆ ମନ୍ଦିର ସଜନୀ ଲୋ,
ଗଢୁଛି ନୂଆ ମନ୍ଦିର ।
କେତେ ନୂଆନାମ କେତେ ନୂଆବେଶ କେତେ ନୂଆ କଉଶଳ ସଜନୀ ଲୋ,
କେତେ ନୂଆକଉଶଳ,
କିଏ ପୁଣି ଭାଗ୍ୟ ଭବିଷ୍ୟତ କହି ଦେଖାଉଛି ଯାଦୁଖେଳ ସଜନୀ ଲୋ,
ଦେଖାଉଛି ଯାଦୁଖେଳ ।
କିଏ ପୁଣି କେବେ ନାରୀବେଶ ଧରି ନାଚୁଛି ଶ୍ରୀରାଧା ହୋଇ ସଜନୀ ଲୋ,
ନାଚୁଛି ଶ୍ରୀରାଧା ହୋଇ,
ଆଉ କିଏ ହୁଏ କଳ୍କୀ ଅବତାର ଜଗତ ଉଦ୍ଧାର ପାଇଁ ସଜନୀ ଲୋ,
ଜଗତ ଉଦ୍ଧାର ପାଇଁ ।
ମୋହିନୀ ମନ୍ତ୍ରକୁ କରି କେ ସାଧନ ବଶକରି ନିଏ ନାରୀ ସଜନୀ ଲୋ,
ବଶକରି ନିଏ ନାରୀ,
ଆଉ କିଏ ପୁଣି ବଳିଦିଏ ଶିଶୁ କାଳିମାତା ନାମ ଧରି ସଜନୀ ଲୋ,
କାଳିମାତା ନାମ ଧରି ।



Source: Author, Digitized by PPRACHIN, SOA

ଦୁଃଖୀ ନରନାରୀ ଶରଣ ପଶିଲେ ନିଅନ୍ତି ଦକ୍ଷିଣା ଦାନ ସଜନୀ ଲୋ,

ନିଅନ୍ତି ଦକ୍ଷିଣା ଦାନ,

କିଏ ପୁଣି ଦିଏ ପାଉଁଶ ବଢ଼େଇ ବିଭୂତି ତାହାର ନାମ ସଜନୀ ଲୋ,

ବିଭୂତି ତାହାର ନାମ ।

ସୁନ୍ଦରୀ ଯୁବତୀ ସେବା ପାଇବାକୁ ବାବାଙ୍କର ଭାରି ମନ ସଜନୀ ଲୋ,

ବାବାଙ୍କର ଭାରି ମନ,

ଅପୁତ୍ରିକ ନାରୀ ପୁତ୍ରବତୀ ହୁଏ ଗରିବକୁ ମିଳେ ଧନ ସଜନୀ ଲୋ,

ଗରିବକୁ ମିଳେ ଧନ ।

କେତେ ରାଜନେତା ପ୍ରଶାସକ ପୁଣି ଆସନ୍ତି ବିକଳ ହୋଇ ସଜନୀ ଲୋ,

ଆସନ୍ତି ବିକଳ ହୋଇ,

ସହଜରେ କିଛି ମିଳିଯିବ ଭାବି ଯାଆନ୍ତି ତା' ପାଦ ଛୁଇଁ ସଜନୀ ଲୋ,

ଯାଆନ୍ତି ତା' ପାଦ ଛୁଇଁ ।

ସରଳ ମଣିଷ ମାୟାଜାଲେ ପଡ଼ି ମୋହିନୀରେ ହୁଏ ବଶ ସଜନୀ ଲୋ,

ମୋହିନୀରେ ହୁଏ ବଶ,

ଫୁଲମାଳ ପିନ୍ଧି ଆସନରେ ବସି ଠକ କରେ ସର୍ବନାଶ ସଜନୀ ଲୋ,

ଠକ କରେ ସର୍ବନାଶ ।

ଅଜ୍ଞାନ ବାବାଜୀ ଆଶୀର୍ବାଦ ଦିଏ ତୁଚ୍ଛା ପୂଜାପାଠ କରି ସଜନୀ ଲୋ,

ତୁଚ୍ଛା ପୂଜାପାଠ କରି,

ଅଚେତନ ଲୋକ ସଚେତନ ହୋଇ ଡାକେ ତ୍ରାହି ତ୍ରାହି ହରି ସଜନୀ ଲୋ,

ଡାକେ ତ୍ରାହି ତ୍ରାହି ହରି ।



Source: Author, Digitized by PPRACHIN, SOA

# ତୋ ଲାଗି କେନ୍ଦ୍ରାପଡ଼ା ମନା

(ତୋ ଲାଗି ଗୋପଦାଣ୍ଡ ମନା ରେ କାଳିଆ ସୁନା ସ୍ୱର)

ତୋ ଲାଗି କେନ୍ଦ୍ରାପଡ଼ା ମନାରେ–ରାଉଳ ବାବା, ତୋ ଲାଗି ବାରିମୂଳ ମନା ।

ନିତି ଶୁଣି ତୋର କଥାରେ ସନ୍ତୋଷ, ନିତି ଶୁଣି ତୋରକଥା,
କଳେ ବଳେ ଛଳେ କରିଦେଲୁ ଯାହା, ଶୁଣି ଲାଗେ ବଡ଼ବ୍ୟଥା ।
ଅନୀତି ନିଆଁରେ ଜଳୁଛି ଆଶ୍ରମ ପଛକୁ ଟିକିଏ ଅନାରେ, ରାଉଳ ବାବା ।

ଛିଣ୍ଡି ମାଟି ଆଉ ମାଡ଼ିବନି ସୁର ଜଳକ୍ରୀଡ଼ା କରିବନି,
ମୁଖାଖୋଲି ସବୁ କାଣ୍ଡ କାରଖାନା ଜଣା ପଡ଼ିସାରିଲାଣି ।
ତା'ର ଗୋପଲୀଳା ଯୁବତୀଙ୍କ ମେଳା ଛିଡ଼ାଇଲା ତା'ର ବାନାରେ, ରାଉଳ ବାବା ।

ଶଙ୍କରାନନ୍ଦର ଦୁର୍ନୀତିଗନ୍ଧରେ ଭାଙ୍ଗିଲା ଭକତ ନିଦ,
ବାନାବାବା ମଠ ଛାଡ଼ି ସାରିଲାଣି, ଉଦ୍ଦେଶ୍ୟ ତାହାର ମନ୍ଦ ।
ଘରବୁଡ଼ି ପାଣି ଆଣ୍ଠୁଏ ହେଲାଣି ବାବା ଖାଉଛନ୍ତି ଚଣାରେ, ରାଉଳ ବାବା ।

ଢେଙ୍ଗାବାବା ଏବେ ରାସୋଳକୁ ଛାଡ଼ି କୁଆଡ଼େ ଲୁଚିଛି ଯାଇ,
ଚଗଲା ଠାକୁର ଆଉ କୃଷ୍ଣ ଶିବ ବେଶରେ ଦିଶିବ ନାହିଁ ।
ଅନନ୍ତବାବାର ଅନ୍ତ ହୋଇଯିବ ପେଲିବ ହରଡ଼ ଘଣାରେ, ରାଉଳ ବାବା ।



Source: Author, Digitized by PPRACHIN, SOA

ମିଛୁଆ ବାବାଜୀ ସବୁଯାକ ପାଜି ଅଛନ୍ତି ଓଡ଼ିଶା ସାରା,

ଭଣ୍ଡ ସଂହାରରେ ଆଉ କେତେ ଠକ ଜ୍ୟୋତିଷ ପଡ଼ିବେ ଧରା ।

ଛୋଟ ଜୀବ ତୁହି କାଠଖିଆ ଉଇ ପରଲାଗି ଗଲା ଡେଣାରେ, ରାଉଳ ବାବା ।





Source: Author, Digitized by PPRACHIN, SOA

# ଭଣ୍ଡବାବାଙ୍କ ଦାଶକାଠିଆ ଗୀତ

କଇଳାସ ପର୍ବତରେ ଏକା ଶିବ ଥିଲେ,
ମହର୍ଷି ନାରଦ ଯାଇ ପ୍ରଣିପାତ କଲେ ।
ଜୟ ରାମ ହେ, ନବୀନ ସୁନ୍ଦର ଘନ ଶ୍ୟାମ ହେ ।(ଘୋଷା)
କହିଲେ ହେ ମହାଦେବ ଶୁଣ ନୂଆ କଥା,
ନ ଶୁଣିଲେ ବଢ଼ିଯିବ ମର୍ତ୍ତ୍ୟପୁର ବ୍ୟଥା ।
ଭାରତ ଭ୍ରମଣ ସାରି ଆଜି ମୁଁ ଫେରିଛି,
ମଠ ମନ୍ଦିର ହାଜତେ ବାବାଙ୍କୁ ଭେଟିଛି ।
କେବେଠାରୁ ତୁମ ନାମ ସେ ଭୁଲିଗଲେଣି,
ମାୟା ମୋହ ଲୋଭ ତାଙ୍କୁ ଗ୍ରାସ କରିଲାଣି ।
ହରିନାମ କୃଷ୍ଣନାମ ରାମନାମ ଛାଡ଼ି,
ନିଜନାମ ପ୍ରଚାରରେ ଛାଡୁଛନ୍ତି ରଡ଼ି ।
ଦାମୀ ନାମୀ କେତେ ବାବା ରହି କାରାଗାରେ,
ଭଜୁଛନ୍ତି ଯୁବାନାରୀ ନାମ ଗୋପନରେ ।
ନେଇଥିଲେ ଧନ, କାମ, ଲୋଭକୁ ଆଦରି,
ସଢୁଛନ୍ତି କାରାଗାରେ କରି ନାରୀ ଚୋରି ।
ମାଡ଼ିବସି କେତେ ସରକାରୀ ଜମିବାଡ଼ି,
ଚଢ଼ିଲେ ବାବାଙ୍କ ଚେଲା କିଣି ଦାମୀ ଗାଡ଼ି ।



Source: Author, Digitized by PPRACHIN, SOA

ପ୍ରବଚନ ପ୍ରହେଳିକା ମଦ, ମାଂସ ମୂଳ,
ବହୁନାରୀ ଭୋଗ ସେଠି ହୋଇଲା ପ୍ରବଳ ।
ସରଳ ଲୋକଙ୍କୁ ସିଏ ଭୂଆଁ ବୁଲେଇଲେ,
ମିଛ ସତ କହି ନିଜ ପାଣ୍ଠି ବଢ଼େଇଲେ ।
ଯେତେ ଚୋର, ଅଳସୁଆ, ଅପରାଧୀ, ଠକ,
ବାବାଙ୍କ ଆଶ୍ରୟ ନେଇ ହେଲେ ମଠଲୋକ ।
ପାଗଳ ହୋଇଲେ ବାବା ସବୁ ସୁଖପାଇ,
ପ୍ରଶାସକ ଅନ୍ଧହେଲା ଆଖି ଥାଇଥାଇ ।
ସଚେତନ ହେଲେ ଲୋକ ତାଡିଲେ ଜନତା,
ଭଣ୍ଡବାବାଙ୍କ ବେକରେ ଗଳେଇଲେ ଯୋତା ।
ଆଶାରାମ, ନିତ୍ୟାନନ୍ଦ ରାମପାଳ ପରି,
ଅନେକ ଦୁଷ୍କର୍ମୀଙ୍କର ପାପ ହେଲା ଭାରି ।
ଓଡ଼ିଶା ରାଜ୍ୟକୁ ଯାଇଥିଲି ଭ୍ରମଣରେ,
ଜଗନ୍ନାଥଙ୍କୁ ଦର୍ଶନ କଲି ଆନନ୍ଦରେ ।
ବାଟରେ ତ୍ରାହି ଅଚ୍ୟୁତ ମଠ ଦେଖିନେଲି,
ସୁର ବାବାଙ୍କର ପାପ ମାପ ନେଇଗଲି ।
କୋଣାର୍କ ପାଖରେ ବସିଥିଲେ ବାନାବାବା,
ତାଙ୍କ କାରବାର ଦେଖି ହୋଇଗଲି କାବା ।
କେନ୍ଦ୍ରାପଡ଼ା ଆଡ଼େ ଟିକେ ଆଖି ପକେଇଲି,
ଭଣ୍ଡ ସାରଥୀକୁ ଦେଖି ଚମକି ପଡ଼ିଲି ।



Source: Author, Digitized by PPRACHIN, SOA

ସାଲେପୁରେ ଅଖାବାବା ଜାଲକୁ ବିଛାଇ,
ବସିଛି ଭକତ ଧନ ଲୁଟି ନେବାପାଇଁ ।
ଅନଗୁଳ ପାଶେ ପୁଣି ବସି କଳ୍କୀ ବାବା,
ଗୁପତରେ କରୁଛନ୍ତି ସବୁ ଦେବାନେବା ।
ବାଲେଶ୍ୱର ବାହାନଗା ଗୋପାଳପୁରରେ,
ବସିଛି ଭାସ୍କର ଠକ ବାବାଙ୍କ ବେଶରେ ।
ହୀନାବାବା ହୀନକାର୍ଯ୍ୟ ବାସୁଦେବପୁରେ,
ମୟୂରଭଞ୍ଜର ଚେମାବାବା ଯାଦୁକରେ ।
କହୁ କହୁ କହିଦେଲି ରଖିବେ ଗୁପତ
ଏହିପରି ଠକବାବା ଅଛନ୍ତି ବହୁତ ।
ବିଜ୍ଞାନର ଅଗ୍ରଗତି ହୋଇଛି ଜଗତେ,
ଅନ୍ଧବିଶ୍ୱାସରେ ବନ୍ଧା ବାବାଙ୍କ ଭକତେ ।
ମିଛମାୟା କୁହେଳିକା ମରୀଚିକା ଜାଣି,
ଧାଇଁଛନ୍ତି ବାବାପାଶେ କାହିଁକି କେଜାଣି ?
ପାଇବାକୁ ସହଜରେ ପୁଳେ ଧନ ମାନ,
ଭଣ୍ଡକୁ ଡାକନ୍ତି ସିଏ ପ୍ରଭୁ ଭଗବାନ ।
ଓଡ଼ିଶାବାସୀଙ୍କୁ ପ୍ରଭୁ ସଦ୍‌ବୁଦ୍ଧି ଦିଅନ୍ତୁ,
ଠକ ଭଣ୍ଡମାନଙ୍କଠୁଁ ଦୂରେଇ ରୁହନ୍ତୁ ।
ଜୟ ରାମ ହେ, ନବୀନ ସୁନ୍ଦର ଘନ ଶ୍ୟାମ ହେ ।



Source: Author, Digitized by PPRACHIN, SOA

# ଶୁଣିଛକି ବନ୍ଧୁ ଶୁଣିଛକି ?

ଶୁଣିଛ କି ବନ୍ଧୁ ଶୁଣିଛ କି, ଠକବାବା ନାମ ଶୁଣିଛ କି ?
ଦୁର୍ବଳ ବେଳାରେ ଅସହାୟ ହୋଇ
କେବେ ତାଙ୍କ ପାଲେ ପଡ଼ିଛ କି ? ।୧।

ଅସଲ କଥାଟି ଜାଣିଛ କି, ତାଙ୍କ ଗୁପ୍ତଲୀଳା ଦେଖିଛ କି ?
ମିଛ ମାୟା ପୁଣି କୁହୁକ ଦେଖିକି
ସେ ମାୟାରେ ବାୟା ହେଇଛ କି ?। ୨ ।

କିଛ ଧନମାନ ଦେଇଛ କି, ନିଜ ଦୁଃଖ କଥା କହିଛ କି ?
ନିଜର ଛାତିରେ ହାତରଖି କୁହ
କିଛି ଲାଭ ତୁମେ ପାଇଛ କି ?। ୩ ।

ଶରଣ ତାଙ୍କର ନେଇଛ କି, ମନ୍ତ୍ରରେ ମୋହିତ ହୋଇଛ କି ?
ଯାଦୁଖେଳ ଦେଖି ଭଗବାନ ଭାବି
ତାଙ୍କ ପାଦଧୂଳି ଖାଇଛ କି ? । ୪ ।

ମୂରୁଖ ହୋଇକି ରହିଛ କି, ଆଖିଥାଇ ଅନ୍ଧ ହୋଇଛ କି
ବିଜ୍ଞାନ ଯୁଗରେ ସଚେତନ ହୋଇ
ବାବାଠୁଁ ଦୂରେଇ ରହିଛ କି ? । ୫ ।





Source: Author, Digitized by PPRACHIN, SOA

# ସଚେତନ ଭକ୍ତ

ମୋର ଗୁରୁ ଜଗନ୍ନାଥ ବ୍ରହ୍ମା ମହାଦେବ
ତାଙ୍କୁ ସୁମରିଲେ ଆଉ ଗୁରୁ କି ହୋଇବ । (ଘୋଷା)
ମୋର ପିତାମାତା ଦୁହେଁ ସାକ୍ଷାତ ଈଶ୍ୱର,
ସକଳ ତୀର୍ଥ ଦର୍ଶନ ତାଙ୍କରି ପୟର ।
ମୋର ଶିଶୁ ପୁତ୍ର କନ୍ୟା ଦେବଦେବୀ ମୂର୍ତ୍ତି,
ତାଙ୍କ ଆନନ୍ଦ ଦେଖିଲେ ଫୁଲିଉଠେ ଛାତି ।
ଦେବତା–ପିତା ମୋ ପାଶେ, ବାବା କି କରିବ ? (୧)
ମୋର ବାଡ଼ି ବଗିଚାରେ ଭେଣ୍ଡି ବାଇଗଣ,
ବିଲରେ ଫଳେ ଗହମ ମୁଗ ବିରି ଧାନ ।
ଆମ୍ବ ବଉଳ ବାସ୍ନାରେ ହୁଏ ମୁଁ ମୋହିତ,
ବଗିଚାରେ ଫୁଟେ ଫୁଲ ମୋ ପାଇଁ ବହୁତ ।
ସ୍ୱର୍ଗର ସେ ପାରିଜାତ, କି କାର୍ଯ୍ୟେ ଆସିବ ? (୨)
ପ୍ରକୃତି ମୋର ଶିକ୍ଷକ ସୁଖ ଦିଏ ବାଛି,
ବୃକ୍ଷପରି ବଂଧୁଟିଏ ଆଉ କିଏ ଅଛି ?
ବଣ ପାହାଡ଼ରେ ରୋଗ ଓଉଷଧ ଭରା,
ତନ୍ତ୍ର ମନ୍ତ୍ର ଯାଦୁଖେଳ ମିଥ୍ୟାର ପସରା ।
ମୋ ଚାରିପାଖରେ ମାଟି, ବିଭୂତି କି ହେବ ? (୩)





Source: Author, Digitized by PPRACHIN, SOA

